# ସୌରଶକ୍ତିର କରାମତି

ଡକ୍ଟର ଦେବକାନ୍ତ ମିଶ୍ର







# ସୌରଶକ୍ତିର କରାମତି


ଲେଖକ :

**ଡକ୍ଟର ଦେବକାନ୍ତ ମିଶ୍ର**



ପ୍ରକାଶକ :

**ସୁଧା ପ୍ରକାଶନ**

ବାଖରାବାଦ୍, କଟକ - ୨

ଦ୍ୱିତୀୟ ସଂସ୍କରଣ : **୨୦୦୩**

ପ୍ରଚ୍ଛଦ : ବିଜୟ ପ୍ରଧାନ

ଡି.ଟି.ପି. :

**ୟୁନିଟେକ୍**

କଟକ

ମୁଦ୍ରଣ :

**ଗୁରୁପ୍ରସନ୍ନ ପ୍ରେସ୍**

କଟକ

ମୂଲ୍ୟ : **ଟ ୧୫**

# ଖରାରୁ କ'ଣ ଶକ୍ତି ମିଳୁଛି ?

## (୧)

ରାମ ସାହୁ ଗାଁ ହାଟରୁ ଫେରୁଥିଲେ । ସନ୍ଧ୍ୟା ହୋଇଗଲାଣି । ଗାଁ ମୁଣ୍ଡରେ ଶ୍ୟାମଘନଙ୍କ ସହିତ ଭେଟ ହେଲା । ସେ କହିଲେ, 'ରାମଭାଇ ! ଦିନଯାକ ହାଟରେ କ'ଣ କରୁଥିଲ ? ହସି ହସି ରାମଭାଇ ଉତ୍ତରଦେଲେ, ''ଗୋଟିଏ ଭଲ ଜିନିଷ ଦେଖିଲି । ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଭାରି ଖୁସି ହେଲି ।''

''କିଓ ରାମଭାଇ, କ'ଣ ହେଲା କହୁନ ? କଥାଟା ଲମ୍ବାଉଛ କାହିଁକି ?''– ଶ୍ୟାମଘନଙ୍କ ତୁଣ୍ଡରୁ କଥା ନସରୁଣୁ ଆଉ ଚାରି ପାଞ୍ଚଜଣ ଗ୍ରାମବାସୀ ସେଠାରେ ପହଞ୍ଚିଗଲେ ।

ରାମବାବୁ କହିଲେ, ''ଦେଖିଲି ଗୋଟିଏ ଅଦ୍ଭୁତ ବାକ୍ସ । ବାକ୍ସ ଉପରେ କାଚ ଘୋଡ଼ଣି । ବାକ୍ସ ତଳପଟଟା କଳା ଦିଶୁଛି । ବାକ୍ସଟିକୁ ନାଳବନ୍ଧ ଉପରେ ସୂର୍ଯ୍ୟ ଆଡ଼କୁ ମୁହାଁଇ ରଖାଯାଇଥିଲା । ମୁଁ ସେଠାରେ ପହଞ୍ଚିଲାବେଳକୁ ବାକ୍ସଟିକୁ ଜଗିଥିବା ବାବୁଜଣକ କ'ଣ ସବୁ ବୁଝାଉଥିଲେ ।

ବେଶ୍ ଲୋକଗହଳି ହୋଇଥିବାରୁ ମୁଁ ସେଠାକୁ ଗଲି । ଅନ୍ୟମାନଙ୍କୁ ପଚାରିବାରୁ ଜାଣିପାରିଲି ଯେ, ସେହି ବାକ୍ସ ଭିତରେ ସୂର୍ଯ୍ୟତାପ ବଳରେ ଭାତ, ଡାଲି ରନ୍ଧା ହୋଇଛି ।



କଥାଟା କିଛି ନବୁଝି ଯଦୁ ଠୋ ଠୋ ହସିଲା । କିଛି ଭଲଭାବରେ ନବୁଝି କହିଲା, ତାହାହେଲେ ତ ଗୋଟେ ଗୋଟେ ବାକ୍ସ ରଖିଦେଲେ ଆମ ରୋଷେଇ କାମ ଚଳିଯିବ ! ଖରାରୁ ଯଦି ଜାଳେଣି ମିଳିଯିବ,

ତାହାହେଲେ ଆମ ଗାଁର ମା' ଭଉଣୀମାନେ ଜାଳେଣି ଯୋଗାଣ ପାଇଁ ଘଣ୍ଟା ଘଣ୍ଟା ବୁଲିବେ କାହିଁକି ?

ଘଷି ପକାଇବା ଦରକାର ହେବନାହିଁ କି ଜାଳ ଶୁଖାଇ ଭାଡ଼ିରେ ଜମେଇବାର ଚାହିଦା ଉପୁଜିବ ନାହିଁ । ହଇଓ ରାମ ଭାଇ ! ଖରାରେ ସିନା ଧାନ ଶୁଖିବ, ରୋଷେଇ ପାଇଁ କ'ଣ ଖରାକୁ ଜାଳ ଭାବରେ ବ୍ୟବହାର କରିହେବ ?

ଯଦୁ ପାଟିରୁ କଥା ନସରୁଣୁ ତା' ପିଠି·ଥାପୁଡ଼ାଇ ଶ୍ୟାମଘନ କହିଲେ, ବୁଝିଲୁ ଯଦୁ ! ତୁ ଗୋଟେ ଗାଲୁଆ । ରାମଭାଇ ନିଜେ ଦେଖିଛନ୍ତି, ସେ କ'ଣ କହୁଛନ୍ତି, ଭଲଭାବରେ ଶୁଣୁନାହୁଁ କାହିଁକି ?

ରାମସାହୁ କହିଲେ, ମୁଁ ଏକା ନୁହେଁ, ଆମ ଗାଁର ଆଉ ତିନି-ଚାରିଜଣ ଦେଖିଛନ୍ତି । ଭାତ ତାତିଥିଲା ଓ ଡାଲିରୁ ବାମ୍ଫ ବାହାରୁଥିଲା । ମୁଁ ସେ ଭାତରନ୍ଧା ପାତ୍ରରେ ହାତ ମାରିଦେବାକ୍ଷଣି ମୋ' ହାତଟା ଚାଉଁକରି ତାତିଗଲା । ଖରାକୁ ଯେ ଜାଳ ଭାବରେ ବ୍ୟବହାର କରିହେବ, ଏଥିରେ ଆଉ ମୋର ସନ୍ଦେହ ନାହିଁ ।

ଠିକ୍ ସେତିକିବେଳକୁ ସେହି ଗାଁର ରଘୁ ମଳିକ ହାଟରୁ ଫେରୁଥିଲେ । ସେ କଥାଟା କ'ଣ ବୋଲି ପଚାରିଦେଲେ । ସବୁ କଥା ଶୁଣିସାରିବା ପରେ ସେ ଯଦୁ ଉପରେ ଚିଡ଼ିଗଲେ । ସେ କହିଲେ, ମୁଁ ତ ରାମ ପାଖରେ ଥାଇ ସେହି ବାକ୍ସଟିକୁ ଦେଖିଛି ।

ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସହରରୁ ଆସିଥିବା ବାବୁଜଣକ ସବୁ କଥା ପରିଷ୍କାର ବୁଝାଇଦେଲେ ।



ସେ ବାକ୍ସଟି ଏମିତି ତିଆରି ହୋଇଛି ଯେ ସୂର୍ଯ୍ୟକିରଣ ତା' ଭିତରେ ପଶୁଛି । ମାତ୍ର ପଶୁଥିବା ତାପ ଆଉ ତା' ଭିତରୁ ପଦାକୁ ବାହାରି ପାରୁନାହିଁ । ଉତ୍ତାପ ଯେପରି ପଦାକୁ ବାହାରି ନଆସିବ, ସେଥିପାଇଁ ବାକ୍ସଟିରେ ଠିକଣା ବନ୍ଦୋବସ୍ତ କରାଯାଇଛି ।

ଏପରି ବାକ୍ସଟିକୁ 'ସୌରପାଚକ' ବା 'ସୋଲାର କୁକର୍' କୁହାଯାଉଛି । ବର୍ତ୍ତମାନ ଆମ ସରକାର ଏହି ପାଚକଟିକୁ ଶସ୍ତା ଓ ସୁବିଧାରେ ଲୋକମାନଙ୍କୁ ଯୋଗାଇଦେବାର ବ୍ୟବସ୍ଥା କରୁଛନ୍ତି ।

ରଘୁ ମଲିକଙ୍କ ଭଳି ମାମଲତ୍‌କାର ଏତେ କଥାକହିବା ଦ୍ୱାରା ରାମ ସାହୁଙ୍କ ଉତ୍ସାହ ବଢ଼ିଗଲା । ସେ କହିଲେ, ଆରେ ଯଦୁ ! ଆମ ଗାଁ ଅଞ୍ଚଳର ଲୋକମାନଙ୍କର ସୁବିଧା ପାଇଁ ବର୍ତ୍ତମାନ ସରକାର ବେଶି ନଜର ଦେଉଛନ୍ତି । ସେଇକଥା ସେ ସରକାରୀ କର୍ମଚାରୀ ହାଟରେ ବୁଝାଉଥିଲେ ।

ତୁ ଆର ହାଟପାଳିକୁ ଯିବୁ । ନୂଆ ନୂଆ ପ୍ରକାର ଚୁଲା ବିଷୟରେ ବୁଝାଇ ଦିଆଯିବ । ବାବୁ କହିଛନ୍ତି ଯେ, ଅଳ୍ପ ଜାଳେଣିରେ ରୋଷେଇ ହୋଇପାରିବା ଭଳି ଚୁଲା ତିଆରି ହେଲାଣି । ଦୁଇ ତିନି ପ୍ରକାର ରୋଷେଇ ଏ ଚୁଲାରେ ଏକାବେଳକେ ହୋଇପାରିବ । ଏଥିରୁ ବେଶି ଧୂଆଁ ବାହାରୁନାହିଁ ।

ରାମସାହୁ ଏତିକି କହିବାବେଳକୁ ଦୂରରୁ କିଏ ଜଣେ ଆସୁଥିବାର ଦେଖାଗଲା । ଶ୍ୟାମଘନ କହିଲେ, ଆରେ ! ଆମ ପ୍ରାଥମିକ

ବିଦ୍ୟାଳୟର ମାଷ୍ଟ୍ରେ ବୋଧେ ସେଇଠି ଅଟକିଥିଲେ । ଏତେବେଳକୁ ଫେରୁଛନ୍ତି ।

ଗାଁର ମୁଖିଆ ଲୋକେ ହସଖୁସିରେ କଥାବାର୍ତ୍ତା ହେଉଥିବାର ଦେଖି ମାଷ୍ଟ୍ରେ ଅଟକିଗଲେ । ସେ ଜାଣିପାରିଲେ ଯେ, ସୌର ପାଚକଟି ହିଁ ସମସ୍ତଙ୍କୁ ଆଚମ୍ବିତ କରିଛି । ମାଷ୍ଟ୍ରେ କହିଲେ, କ'ଣ ଖାଲି ସେତିକି ! ଆଜିକାଲି ଧାନ ଶୁଖାଇବା ପାଇଁ, ପାଣି ଗରମ କରିବା ପାଇଁ, ରହିବା ଘରକୁ ଉଷୁମ ରଖିବା ପାଇଁ ସୂର୍ଯ୍ୟ କିରଣକୁ କାମରେ ଲଗାଯାଉଛି । ବୁଦ୍ଧିଆ କାରିଗରମାନେ ବିଚକ୍ଷଣ କୌଶଳଗୁଡ଼ିକୁ କାମରେ ଲଗାଇବା ପାଇଁ ଯନ୍ତ୍ର ତିଆରି କରୁଛନ୍ତି ।

ରାମସାହୁ କଥା ମଝିରେ ବାଧାଦେଇ କହିଲେ, ହଇଏ ମାଷ୍ଟ୍ରେ ! ସେ ବାବୁ ଖରାରୁ ବିଜୁଳି ମିଳିବା କଥା କ'ଣ କହୁଥିଲେ ? ତୁମେ କିଛି ବୁଝିପାରିଲ କି ?

ହଁ ହଁ, ସେ କୌଶଳକୁ ତ କାମରେ ଲଗାଯାଉଛି । ଆମର ଯେଉଁ ମହାକାଶଯାନଗୁଡ଼ିକ ମହାଶୂନ୍ୟରେ ଚନ୍ଦ୍ର ଭଳି ପୃଥିବୀ ଚାରିପଟେ ଘୂରୁଛନ୍ତି, ସେଥିରେ ବିଭିନ୍ନ ଯନ୍ତ୍ର ଖଞ୍ଜାଯାଇଛି । ଏହି କୌଶଳ ସାହାଯ୍ୟରେ ବିଜୁଳି ବା ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯିବା ସମ୍ଭବ ହେଉଥିବାରୁ, ଯାନ ଭିତରେ ଥିବା ଯନ୍ତ୍ରଗୁଡ଼ିକ କାମ କରିବାପାଇଁ ଶକ୍ତି ମିଳିଯାଉଛି । ମାଷ୍ଟ୍ରେ ଏତିକି କହି ଆଉ କ'ଣ ସବୁ କହିବାକୁ ଚାହୁଁଥିଲେ ।




ତାଙ୍କ କଥାରେ ହଠାତ୍ ବାଧାଦେଇ ଯଦୁ କହିଲା, ମାଷ୍ଟ୍ରେ !

ଖରାରୁ ବିଜୁଳି ! କ'ଣ ଆପଣ ହୋସ୍‌ରେ ଅଛନ୍ତି ତ ?

ରାମସାହୁ ବଡ଼ପାଟିରେ କହିଲେ, ହଇରେ ଯଦୁ ! ତୁ ଗୋଟେ ବାହାପିଆ ହେଲୁଣି । ଦୁନିଆଁ ଯାଇ କୋଉଠି ପହଞ୍ଚିଲାଣି, ତୋର କିଛି ଜାଣିବାକୁ ବା ଶିଖିବାକୁ ଆଗ୍ରହ ନାହିଁ । ଅନ୍ୟ କେହି କିଛି ଶିଖିବାକୁ ଚାହିଁଲେ ତୁ ସଜମାଛରେ ପୋକ ପକାଇ ସବୁ ଭଣ୍ଡୁର କରୁଛୁ କାହିଁକି ?

ରାମବାବୁଙ୍କ ଆକଟ ଶୁଣି ଯଦୁ ଚୁପ୍ ହୋଇଗଲା । ମାଷ୍ଟ୍ରେ କହିଲେ, ଆମେ ଯେମିତି ବ୍ୟାଟେରୀ ପକାଇଲେ ଟର୍ଚ୍ଚରୁ ଆଲୁଅ ବାହାରୁଛି, ଠିକ୍ ସେମିତି ଖରା ପଡ଼ିବା କ୍ଷଣି କେତେକ ବିଶେଷଭାବରେ ପ୍ରସ୍ତୁତ କୋଷରୁ ବିଦ୍ୟୁତ୍ ଶକ୍ତି ବାହାରୁଛି । ଆମ ବ୍ୟାଟେରୀରେ ରାସାୟନିକ ଶକ୍ତି ବିଦ୍ୟୁତ୍ ଶକ୍ତିରେ ପରିଣତ ହେଉଛି ।

ସୌର ବ୍ୟାଟେରୀରେ ସୂର୍ଯ୍ୟତାପ ବିଦ୍ୟୁତ୍‌ଶକ୍ତିକୁ ରୂପ ବଦଳାଉଛି । ଏହି ବ୍ୟାପାର ତୁଲାଇବା ପାଇଁ ସିଲିକନ୍ ସ୍ଫଟିକଗୁଡ଼ିକୁ ବ୍ୟବହାର କରାଯାଉଛି । ମହାକାଶଯାନମାନଙ୍କରେ ସିଲିକନ୍ ସ୍ଫଟିକଗୁଡ଼ିକର ସମାହାରରେ ପ୍ରସ୍ତୁତ ସୌର ବ୍ୟାଟେରୀକୁ ସୂର୍ଯ୍ୟଆଡ଼କୁ ବରାବର ମୁହାଁଇ ରଖାଯିବା ଫଳରେ ସେଥିରୁ ଆଶାନୁରୂପ ପରିମାଣର ବିଦ୍ୟୁତ୍‌ଶକ୍ତି ମିଳୁଛି ।

ଶ୍ୟାମଘନ କହିଲେ, ଆଚ୍ଛା ! ଯଦି ଖରାରୁ ବିଜୁଳି ମିଳିବାର କୌଶଳ ଜଣାଗଲାଣି, ଆମ ସରକାର ଗାଁ-ଗହଳକୁ ବିଜୁଳି ଯୋଗାଇ ଦେବାପାଇଁ ଏଇ କୌଶଳଟିକୁ କାମରେ ଲଗାଇବା ଠିକ୍ ହେବନାହିଁ କି ?

ମାଷ୍ଟ୍ରେ କହିଲେ, ଅସଲ କଥା ହେଉଛି ଯେ, ଯେଉଁ ଉପାୟରେ ସେହି ସିଲିକନ୍ ସ୍ଫଟିକଗୁଡ଼ିକୁ ତିଆରି କରାଯାଉଛି, ତାହା ବଡ଼ ବ୍ୟୟସାପେକ୍ଷ ହୋଇଛି । ସୌରକୋଷର ଦାମ୍ ଏତେ ବେଶି ଯେ ଏହାକୁ କେବଳ ମହାକାଶଯାନଗୁଡ଼ିକରେ ବ୍ୟବହାର କରାଯାଉଛି । ସର୍ବସାଧାରଣଙ୍କୁ ବ୍ୟବସାୟିକ ସୂତ୍ରରେ ବିଜୁଳି ଯୋଗାଇ ଦେବାପାଇଁ ଏବେ ମଧ୍ୟ ଏହି କୌଶଳଟିକୁ ସମୁନ୍ନତ କରାଯାଉଚି ।

ସେହି ବାବୁଜଣକ ବୁଝାଉଥିଲେ ଯେ, ଆଗାମୀ ଶତାବ୍ଦୀରେ ଏ ପ୍ରକାର କୋଷକୁ ଶସ୍ତାରେ ଉତ୍ପାଦନ କରାଯାଇ ପାରିବ । ଏହା ସମ୍ଭବ ହେବା ପରେ ଜନସାଧାରଣଙ୍କ ପାଇଁ ଏ ଦିଗରେ ଠିକଣା ବ୍ୟବସ୍ଥା କରାଯିବ ।

ରାମସାହୁ କହିଲେ, ଏ ହେଲା ବିଜ୍ଞାନର ଯୁଗ । ଖରାରୁ ବିଜୁଳି ମିଳିବାଟା କିଛି ବିଚିତ୍ର ନୁହେଁ । ମାତ୍ର ଆମେ ଏଥିରୁ ବର୍ତ୍ତମାନ କ'ଣ ଫାଇଦା ଉଠାଇ ପାରିବା ? ଯାହା ଜଣାପଡୁଛି, ଧାନ ଶୁଖାଇବା ପାଇଁ, ପାଣି ଗରମ କରି ପାଇଁ, ଜଳସେଚନ ଉଦ୍ଦେଶ୍ୟରେ ଛୋଟ ଛୋଟ ପମ୍ପଗୁଡ଼ିକୁ ଚଳାଇବା ପାଇଁ ଆମେ ସୂର୍ଯ୍ୟଠାରୁ ମିଳୁଥିବା ଉତ୍ତାପ ଶକ୍ତିର ସଦ୍‌ବ୍ୟବହାର କରିପାରିବା । ମୁଁ ବୁଝିପାରୁଛି ଯେ, ଆମ ଦେଶର କାରିଗରମାନେ ଏଥିପାଇଁ ଆନୁଷଙ୍ଗିକ ଯନ୍ତ୍ରକୌଶଳ ଯୋଗାଇ ପାରୁଛନ୍ତି ।

ମାଷ୍ଟ୍ରେ କଥାଟାକୁ ଆହୁରି ପ୍ରାଞ୍ଜଳଭାବରେ ବୁଝାଇବା ପାଇଁ କହିଲେ, ଦେଖ ! ସୌରଶକ୍ତି ହେଉଛି ସକଳ ଶକ୍ତିର ଆଧାର ।

ସୂର୍ଯ୍ୟ ଲାଗି ଏ ଜୀବଜଗତ ଓ ବୃକ୍ଷଲତା ବଞ୍ଚିରହିଛି । ଆଜିକାଲି ଯେଉଁ କୋଇଲା, ଖଣିଜତୈଳ ଆଦି ଜାଳେଣିକୁ ବିଭିନ୍ନ ପ୍ରକାର ଯନ୍ତ୍ର ବା ଯାନଗୁଡ଼ିକୁ ଚଳାଇବା ପାଇଁ ବ୍ୟବହାର କରାଯାଉଛି, ତାହା ମଧ୍ୟ ସୌରଶକ୍ତିର ରୂପାନ୍ତର । ପୁଣି, ଏହି ଜାଳେଣି ସମେତ ବିଦ୍ୟୁତ୍‌ଶକ୍ତିକୁ ଆମେ ବିଭିନ୍ନ ପ୍ରକାରେ ଉତ୍ପାଦନ କରୁଛୁ ।

ଆମ ରାଜ୍ୟରେ ହୀରାକୁଦ, ରେଙ୍ଗାଲି ପ୍ରଭୃତି ସ୍ଥାନରେ ଜଳ-ବିଦ୍ୟୁତ୍ ଯୋଜନା କାର୍ଯ୍ୟକାରୀ ହେଉଛି । ତାଳଚେରଠାରେ ଥର୍ମାଲ ଷ୍ଟେସନ୍‌ରୁ କୋଇଲା ଜାଳି ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଉଛି । ଏତେ ପ୍ରକାରେ ଶକ୍ତି ଉତ୍ପାଦନ କରାଯାଉଥିଲେ ମଧ୍ୟ ଶକ୍ତିର ଅଭାବ ଘଟୁଛି ।

ଖଣିଜତୈଳର ଅଭାବ ଯୋଗୁଁ ତା' ଦାମ୍ ହୁ-ହୁ ଭାବରେ ବଢ଼ିଚାଲିଛି । ପୁଣି ଏଇ ତେଲ ସରିଯିବାର ସମ୍ଭାବନା ଦେଖାଗଲାଣି । ତେଣୁ ଏ ଦିଗରେ ମିତବ୍ୟୟୀ ହେବାକୁ ପଡୁଛି । କୋଇଲା ବେଶି ପରିମାଣରେ ଜାଳିବା ଦ୍ୱାରା ପରିବେଶ ବିଷାକ୍ତ ହେଉଛି । ଏହା ମଧ୍ୟ ଆଉ ପ୍ରାୟ ୨୦୦ ବର୍ଷ ପରେ ସରିଯିବାର ସମ୍ଭାବନାକୁ ଏଡ଼ାଇ ହେଉନାହିଁ ।

ବହୁତ ପଇସା ଖର୍ଚ୍ଚ କରି ସରକାର ଯେଉଁ ଜଳ ବିଦ୍ୟୁତ୍ ଓ ଥର୍ମାଲ ଯୋଜନା କାର୍ଯ୍ୟକାରୀ କରୁଛନ୍ତି, ସେଗୁଡ଼ିକ ଜରିଆରେ ବଡ଼ ବଡ଼ ସହର ଓ ଶିଳ୍ପାଞ୍ଚଳଗୁଡ଼ିକୁ ଏବଂ ଆମ ଗାଁ ଗହଳକୁ ଚାହିଦା ମୁତାବକ ଶକ୍ତି ଯୋଗାଇଦେବା ସମ୍ଭବ ହେଉନାହିଁ । ଏଣୁ

ଜନସାଧାରଣଙ୍କ ଚାହିଦା ପୂରଣ ପାଇଁ ତଥା ଦେଶର ପ୍ରଗତି ପାଇଁ ଏଇ ଶକ୍ତି ଯୋଗାଇଦେବାର ସମସ୍ୟାଟି ହିଁ ସମସ୍ତଙ୍କୁ ବର୍ତ୍ତମାନ ବ୍ୟସ୍ତ କରିପକାଉଛି ।

ଶ୍ୟାମଘନ କହିଲେ, ହଇଏ ମାଷ୍ଟ୍ରେ ! ବଡ଼ ବଡ଼ ଧନୀ ଦେଶଗୁଡ଼ିକ ତ ଏ ସମସ୍ୟାର ସମାଧାନ କରିପାରୁନାହାନ୍ତି । ଶକ୍ତି ସମସ୍ୟା ସହିତ ପରିବେଶର ପ୍ରଦୂଷଣ ସମସ୍ୟା ବର୍ତ୍ତମାନ ଗୋଟିଏ ଚିନ୍ତାର ବିଷୟ ହୋଇଛି । ଉଭୟ ଶକ୍ତି ଚାହିଦା ପୂରଣ ଓ ପରିବେଶର ସୁରକ୍ଷା ପାଇଁ କ'ଣ କୌଣସି ଉପାୟ ନାହିଁ ?

ତାଙ୍କ କଥା ନସରୁଣୁ ରାମ ସାହୁ କହିଲେ, ଆହେ ଶ୍ୟାମଘନ ! ଏ ବଡ଼ ବଡ଼ କଥାରୁ ଆମକୁ କ'ଣ ମିଳିବ ? ଆମେ ତ ରୋଷେଇ କରିବା ପାଇ ଜାଳେଣି ପାଉନାହୁଁ । ଆମ ଦେଶର ଗ୍ରାମାଞ୍ଚଳର ଜାଳେଣି ସମସ୍ୟା ଅତି ଉତ୍କଟ ହେଲାଣି । ଆଉ ଗରିବ ଲୋକେ ଘଷି ପକାଇବାକୁ ଗୋବର ପାଉନାହାନ୍ତି ।

ଯାହାର ଗାଈ ଅଛି, ସେ ଟିକିଏ ଗୋବର ଛାଡ଼ିବାକୁ ନାରାଜ । ପୁଣି, ପାଖ ଅଞ୍ଚଳର ଜଙ୍ଗଲକୁ ତ କାଟି ଲୋକେ ସଫା କରିଦେଲେଣି । ଯାହା ବାଡ଼ିରେ ଆଉ କିଛି ଗଛ ଅଛି, ସେଗୁଡ଼ିକ ଅଳ୍ପ ଦିନରେ ସଫା ହୋଇଯିବ । ଯାହା ଜଙ୍ଗଲ ବଳିଛି, ସେଥିରୁ ଆଉ ଚୋରି କରି କାଠ ହାଣିବା ସମ୍ଭବ ନୁହେଁ । ଆମ ଗ୍ରାମାଞ୍ଚଳର ଏହି ଶୋଚନୀୟ ପରିସ୍ଥିତିର ମୁକାବିଲା ପାଇଁ କିଛି ଜାଣିବା ଓ କିଛି କରିବା କ'ଣ ଆମ କର୍ତ୍ତବ୍ୟ ନୁହେଁ ?

ଶ୍ୟାମଘନ ଓ ରାମସାହୁଙ୍କ କଥା ଶୁଣି ମାଷ୍ଟ୍ରେ ଭାରି ଖୁସି ହେଲେ । ସେ କହିଲେ, ଏଗୁଡ଼ିକ ହିଁ ଅସଲ ପ୍ରଶ୍ନ । ଏହି ପ୍ରଶ୍ନଗୁଡ଼ିକର ଠିକଣା ଉତ୍ତର ପାଇଁ କେବଳ ଆମ ଦେଶ କାହିଁକି, ପୃଥିବୀର ସବୁ ଦେଶରେ ତନାଘନା ଆୟୋଜନ ଚାଲିଛି । ଯେଉଁ ପ୍ରକାର ଶକ୍ତି ଯୋଗାଇଦେବା ଦ୍ୱାରା ଆମ ଗ୍ରାମାଞ୍ଚଳର ଲୋକେ ବିଶେଷ ଉପକୃତ ହେବେ ଏବଂ ଯାହାକୁ ଗ୍ରାମାଞ୍ଚଳକୁ ସହଜରେ ଯୋଗାଇଦେବା ସଙ୍ଗେ ସଙ୍ଗେ ପାରିପାର୍ଶ୍ୱିକ ପରିବେଶକୁ ନିର୍ମଳ ରଖିହେବ, ସେହି ପ୍ରକାର ଶକ୍ତି ଉତ୍ସଗୁଡ଼ିକର ସନ୍ଧାନ ମିଳିଲାଣି ।

ଆମ କେନ୍ଦ୍ର ସରକାର ''ଅଣଗତାନୁଗତିକ ଶକ୍ତି ଉତ୍ସ ମନ୍ତ୍ରଣାଳୟ'' ନାମରେ ଗୋଟିଏ ମନ୍ତ୍ରଣାଳୟ ଖୋଲିଛନ୍ତି । ରାଜ୍ୟ ସରକାରଙ୍କ ''ବିଜ୍ଞାନ ପ୍ରଯୁକ୍ତି ବିଦ୍ୟା ଓ ପରିବେଶ ମନ୍ତ୍ରଣାଳୟ'' ଏହି ମନ୍ତ୍ରଣାଳୟ ସହିତ ଯୋଗସୂତ୍ର ରକ୍ଷା କରିଛି । ସୂର୍ଯ୍ୟଠାରୁ ମିଳୁଥିବା ଶକ୍ତି, ପବନ, ଜୁଆର, ଜୈବିକ ବସ୍ତୁ, ସମୁଦ୍ର ତରଙ୍ଗମାଳାର ଗତିଜ ଶକ୍ତି, ଭୂତାପୀୟ ଶକ୍ତି ପ୍ରଭୃତି ବହୁ ପ୍ରକାରର ଶକ୍ତି ଉତ୍ସଗୁଡ଼ିକୁ କାମରେ ଲଗାଇ ପାରିବା ଭଳି କୌଶଳ ବାହାରିଲାଣି ।

ଆମେ ବୁଝିବାର କଥା ଯେ, ଏହି ଶକ୍ତି ଉତ୍ସଗୁଡ଼ିକ ନିଃଶେଷ ହୋଇଯିବାର ସମ୍ଭାବନା ନାହିଁ । କିମ୍ବା ଏଗୁଡ଼ିକୁ କାମରେ ଲଗାଇବା ଦ୍ୱାରା କୋଇଲା, ଖଣିଜତୈଳ ବା ନିଉକ୍ଲିଆର ଶକ୍ତି ଭଳି ଏଗୁଡ଼ିକ ପରିବେଶକୁ ଦୂଷିତ କରିବାର ସମ୍ଭାବନା ନାହିଁ । ଏଣୁ ଏପରି ଶକ୍ତି ଉତ୍ସଗୁଡ଼ିକରୁ ଶକ୍ତି ଉତ୍ପାଦନ କରିବାର ତଥା ମିଳୁଥିବା ଶକ୍ତିକୁ ବିଭିନ୍ନ ପ୍ରକାରେ ଘରୋଇ, କୃଷି ଓ ଶିଳ୍ପ ପାଇଁ ବ୍ୟବହାର କରିବାର କୌଶଳକୁ ବର୍ତ୍ତମାନ ସମୁନ୍ନତ ଓ ସକ୍ରିୟ କରାଯାଉଛି ।



ରାମ ସାହୁ ଏକାଥରକେ ଏତେ କଥା ବୁଝିପାରିଲେ ନାହିଁ ।
ସେ କହିଲେ, ବୁଝିଲ ଭାଇମାନେ ! ଏଇ ମଣିଷ ବୁଦ୍ଧି ଖଟାଇ

ଅସାଧ୍ୟ ସାଧନ କରୁଛି । ଯାହା ଅସୁବିଧା ହେଉଛି, ତାହାକୁ ସହଜରେ ଓ ସୁବିଧାରେ ନିଜ ଅକ୍ତିଆରକୁ ଆଣିବା ପାଇଁ ସେ ଦିନକୁଦିନ ନୂଆ ନୂଆ କୌଶଳ ବାହାର କରୁଛି । ଆମେ ପଞ୍ଚେ ଲୋକ ପ୍ରତିଦିନ ବୈଠକ ଘରେ ଆଡ୍‌ଡା ଜମାଉଛେ ।

ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ କେବଳ ଚୁଗୁଲି କରିବାରେ ଓ ଚୁଗୁଲି ଶୁଣିବାରେ ବ୍ୟସ୍ତ । ମାଷ୍ଟ୍ରଙ୍କୁ ଡାକି ପଦେଅଧେ ଭଲ କଥା ଶୁଣିଲେ କିମିତି ହୁଅନ୍ତା ?

ଶ୍ୟାମଘନ କହିଲେ, ''କୁଳ ବୁଡ଼ିବା ବେଳକୁ ଘୋଡ଼ାମୁହାଁ ପୁଅ ଜନ୍ମ ହୋଇଛନ୍ତି । ଏ ଗାଁ ପିଲାଗୁଡ଼ାକ ଅଧାପାଠୁଆ ହୋଇ ନା ଚାଷକାମ କରୁଛନ୍ତି ନା କୌଣସି ଗୋଟିଏ ବୃତ୍ତିରେ ମନ ଦେଉଛନ୍ତି । ଭଲ କଥା ଶୁଣି ଓ ଭଲ କଥା ବୁଝି ନିଜର ତଥା ନିଜ ଗାଁର ଉନ୍ନତି ପାଇଁ କାମ କଲେ ହୁଅନ୍ତା ନାହିଁ ? ରେଡ଼ିଓଟା ବାଜୁଛି । ପ୍ରତିଦିନ ଟୋକା ପଞ୍ଚେ ବସି ସିନେମା ଗୀତ ଶୁଣିବାରେ ବ୍ୟସ୍ତ । ଭଲ କଥା ଆଲୋଚନା ହେବା ବେଳକୁ ତାସ ଖେଳ । ଛାଡ଼ ଛାଡ଼, କାହାକୁ କହିବା, କପାଳରେ ସିନା କର ମାରିବା !''

ମାଷ୍ଟ୍ରେ କହିଲେ, ଶ୍ୟାମଘନ ! ପିଲାମାନଙ୍କୁ ଦୋଷ ଦେଇ ଲାଭ ନାହିଁ । ଘରର ମା' ଓ ମୁରବିମାନେ ପିଲାମାନଙ୍କୁ ବାଟକୁ ଆଣିବାକୁ କ'ଣ କରୁଛନ୍ତି ? ନିଜେ ସିନା ଭଲ ଆଦର୍ଶ ଦେଖାଇଲେ, ନିଜେ ଦି'ପଦ ଭଲ କଥା ଜାଣିଲେ ଶୁଣିଲେ, ପିଲାମାନଙ୍କୁ ଠିକଣା



ବାଟକୁ ଆଣିପାରିବେ । ଛୋଟ ପିଲାଗୁଡ଼ାକ ଗାଁ ଦାଣ୍ଡରେ ବା ଡୋଟାରେ ଖେଳୁଛନ୍ତି । ଦିନରାତି ଖେଳ । ତାଙ୍କୁ ଟିକିଏ ସ୍କୁଲକୁ ଯିବାକୁ କ'ଣ କିଏ କହୁଛି ? ଖାଲି ତୁଚ୍ଛା ଉପଦେଶର ମୂଲ୍ୟ କ'ଣ ?

ରାମ ସାହୁ ଆଉ କଥାଟାକୁ ବଢ଼ାଇବାକୁ ଦେଲେନାହିଁ । ସେ କହିଲେ, ''ଆଚ୍ଛା ! ମାଷ୍ଟ୍ରେ ଆମେ ଏଣିକି ବୈଠକ ଘରେ ଏଇ ସବୁ ବିଷୟରେ ଘଣ୍ଟେ ଲେଖାଏଁ ଆଲୋଚନା କରିବା । ଯୁବକ ଓ ମୁରବିସ୍ଥାନୀୟ ଲୋକେ ତୁମ କଥା ଶୁଣିବେ । ପିଲାମାନେ ଦେଶ କଥା ଜାଣନ୍ତୁ । ଆମେ କିଛି ଶିଖିବା, ଗାଁର ଭଲ ପାଇଁ ପିଲାମାନଙ୍କୁ ମତାଇବା । ଏହାଦ୍ୱାରା ପିଲାମାନଙ୍କର ମଙ୍ଗଳ ହେବ ଓ ଗାଁର ଉନ୍ନତି ହେବ ।''

ମାଷ୍ଟ୍ରେ ଦେଖିଲେ ଭଲ ସୁଯୋଗଟିଏ ମିଳିଛି । ସେ କହିଲେ, ଆଜିକାଲି ଆମ ସରକାର ଗାଁର ଉନ୍ନତି ପାଇଁ ବିଭିନ୍ନ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରୁଛନ୍ତି । ଏଇ ଯେଉଁ ଜାଳେଣି କଥା କହିଲ, କୃଷି ପାଇଁ ବିଜୁଳି ଅଭାବ କଥା କହୁଛ, ତାହାର ସମାଧାନର ଉପାୟ ବାହାରିଲାଣି । ଆସ ! କାଲି ବୈଠକରେ ଏକାଠି ହେବା । ମୁଁ ଯେଉଁ ତାଲିମ୍ ନେବାକୁ ଏବେ ଯାଇଥିଲି, ସେ ବିଷୟରେ ତୁମ୍ଭମାନଙ୍କୁ ଭଲଭାବରେ ବୁଝାଇଦେବି ।

ଯଦୁକୁ କହିବା ପାଇଁ ଗୋଟିଏ ସୁବିଧା ମିଳିଗଲା । ସେ କହିଲା, ଦୁନିଆଁ କଥା ଛାଡ଼ । ଆମ ଗାଁର ଉନ୍ନତି ହେବା ଭଳି କିଛି କହିବେ କି ? ଆମ ଅଭାବ ଅସୁବିଧା ଶୁଣିବାକୁ କେହି ନାହିଁ । ଯଦି ଆମ ନିଜ ଦ୍ୱାରା କିଛି ହୋଇପାରିବ, ସେହିପରି କଥା କହିଲେ ଆମେ ଶୁଣିବୁ । ମୁଁ କାଲି ସନ୍ଧ୍ୟାବେଳକୁ ସବୁ ଟୋକାଙ୍କୁ ବୈଠକ ଘରକୁ ଡାକିଆଣିବି ।

ମାଷ୍ଟ୍ରେ ଦେଖିଲେ ଯଦୁର ମନ ଘର ଧରିଛି । ସେ କହିଲେ, ହଉ ! ତୁମକୁ ଦୁଇଟି ବିଷୟରେ ସୂଚନା ଦେବି । ଗୋଟିଏ ହେଲା ଜୈବିକ ବସ୍ତୁରୁ ଗୋବରଗ୍ୟାସ୍ ଉତ୍ପାଦନ ଓ ଅନ୍ୟଟି ହେଉଛି ଶକ୍ତି ଜଙ୍ଗଲ ଓ ସାମାଜିକ ବନ । ଏହି ଯୋଜନାଗୁଡ଼ିକୁ ଆମେ ସହଜରେ କାର୍ଯ୍ୟକାରୀ କରିପାରିବା । ଏଥିପାଇଁ ଏକତା ଓ ଭଲ ବୁଝାମଣା ଦରକାର । ଏକା ମନ ଏକା ପ୍ରାଣରେ କାମ କଲେ ଏ ଦୁଇଟି ଯୋଜନା ଜରିଆରେ ଗାଁର ଉନ୍ନତି ହେବ । ଆମ ଆୟ ବଢ଼ିବ । ଆମେ ସୁବିଧାରେ ଚଳିବା ସଙ୍ଗେ ସଙ୍ଗେ ଜାତୀୟ ପ୍ରଗତି ପାଇଁ କିଛି ପରିମାଣରେ ସାହାଯ୍ୟ କରିପାରିବା ।



# ଗୋବରଗ୍ୟାସ୍ ପ୍ଲାଣ୍ଟ

## (୨)

ମଙ୍ଗଳପୁର ଗୋଟିଏ ଛୋଟ ଗାଁ । ପଚିଶଟି ଖଞ୍ଜା । ଲୋକସଂଖ୍ୟା ପ୍ରାୟ ଦେଢ଼ଶହ ଭିତରେ । ସନ୍ଧ୍ୟା ହେବାକ୍ଷଣି ବୈଠକଘରେ ପ୍ରାୟ ତିରିଶଜଣ ଯୁବକ ଓ କୋଡ଼ିଏଜଣ ମୁରବିସ୍ଥାନୀୟ ଲୋକ ଏକାଠି ହେଲେ । ମାଷ୍ଟ୍ରେ କାମଦାମ ସାରି ସନ୍ଧ୍ୟାବେଳକୁ ପହଞ୍ଚିଗଲେ ।

ମାଷ୍ଟ୍ରଙ୍କୁ ଦେଖି ଯଦୁ କହିଲା, କ'ଣ ମାଷ୍ଟ୍ରେ ! ଏଥର କାଲିକା କଥା ଶୁଣାନ୍ତୁ । ସେ ଗୋବରଗ୍ୟାସ୍ କଥା ଜାଣିବାକୁ ଆମର ଭାରି ଆଗ୍ରହ ।



ମାଷ୍ଟ୍ରେ କହିଲେ, ''ବୁଝିଲୁ ଯଦୁ ! ମୁଁ ଏବେ ଗୋଟିଏ ପ୍ରଦର୍ଶନୀରେ ସେଇ ଗୋବରଗ୍ୟାସ୍ ପ୍ଲାଣ୍ଟ୍ ଦେଖିଆସିଲି । ଆମ

ରାଜ୍ୟରେ ଏହାର ପ୍ରସାର ପାଇଁ ରାଜ୍ୟ ସରକାର ବିଶେଷ ଆଗ୍ରହ ପ୍ରକାଶ କରୁଛନ୍ତି । ଖଦୀ ଓ ଗ୍ରାମୋଦ୍ୟୋଗ କମିଶନ ଜରିଆରେ ଲୋକମାନଙ୍କୁ ଏ ବିଷୟରେ ତାଲିମ୍ ଦିଆଯାଉଛି । ଆମେ ଚାହିଁଲେ ସେଠାକାର ବିଶେଷଜ୍ଞମାନେ ଆମ ଗାଁରେ ଗୋଟିଏ ଗୋବର ଗ୍ୟାସ ପ୍ଲାଣ୍ଟ୍ ପ୍ରତିଷ୍ଠା କରିବାରେ ସାହାଯ୍ୟ କରିବେ । ଏଥିପାଇଁ ସେମାନେ ଯଥେଷ୍ଟ ଶସ୍ତାରେ ଆମ୍ଭମାନଙ୍କୁ ପ୍ଲାଣ୍ଟଟିକୁ ଯୋଗାଇଦେବେ । ଆମ ଗାଁର ଜଣେ ଦୁଇଜଣ ଯୁବକ ତାଲିମ୍ କେନ୍ଦ୍ରରୁ ତାଲିମ୍ ପାଇଯିବା ପରେ ଏହାର ରକ୍ଷଣାବେକ୍ଷଣ ଦାୟିତ୍ୱ ତୁଲାଇ ପାରିବେ ।''

ଶ୍ୟାମଘନ କହିଲେ, ମାଷ୍ଟ୍ରେ ! ଏ ଗୋବର ଗ୍ୟାସ୍ କ'ଣ ? ଗୋବରଗୁଡ଼ାକ କ'ଣ ଗ୍ୟାସ୍ ହେଉଛି ? ସେଥିରୁ ଆମକୁ କେଉଁ ପ୍ରକାର ଫାଇଦା ମିଳିବ ? ଭଲ ମନ୍ଦ କଥା ଜାଣିଲେ ସିନା ଆମେ ସେ ଦିଗରେ ଚେଷ୍ଟା କରିବୁ !

ମାଷ୍ଟ୍ରେ ନିଜ ଭୁଲ ବୁଝିପାରିଲେ । ସେ ଅସଲ କଥାଟା ନକହି ଆଗ କାମ କଥା କହୁଛନ୍ତି । ସେ କହିଲେ, କୂଅଭଳି ଖାତ ଖୋଳି ବା ବାକ୍ସ ତିଆରି କରି ତା' ଭିତରେ ଗୋବର ପୂରାଇ ରଖିବା ଦ୍ୱାରା ଗୋବର ଗ୍ୟାସ୍ ଉତ୍ପନ୍ନ ହୁଏ । ଏଥିପାଇଁ ଖାତଟି ବା ବାକ୍ସଟି ବାୟୁରୋଧୀ ହେବା ନିତାନ୍ତ ଆବଶ୍ୟକ । ତା' ଭିତରେ ଗୋବର ପଚିଯାଏ ଓ ସେଥିରୁ ମୁଖ୍ୟତଃ 'ମିଥେନ୍' ନାମକ ଗୋଟିଏ ଦହନଯୋଗ୍ୟ ଗ୍ୟାସ୍ ବାହାରେ । ଉପଯୁକ୍ତ ବ୍ୟବସ୍ଥା ବଳରେ ଏହି

ଗ୍ୟାସ୍‌କୁ ଆମେ ରୋଷେଇ ପାଇଁ ବ୍ୟବହାର କରିପାରିବା କିମ୍ବା ଘରଗୁଡ଼ିକୁ ଆଲୋକିତ କରିବା ପାଇଁ ମଧ୍ୟ ଏହାର ସାହାଯ୍ୟ ନେଇପାରିବା । କେବଳ ଗୋମହିଷାଦି ପଶୁମାନଙ୍କ ଗୋବର କାହିଁକି, ଆମ୍ଭମାନଙ୍କ ମଳମୂତ୍ରରୁ ମଧ୍ୟ ଏ ପ୍ରକାର ଗ୍ୟାସ୍ ଉତ୍ପନ୍ନ କରିହେବ । ଆମ ଦେଶର ଗୋମହିଷାଦି ପଶୁମାନଙ୍କ ସଂଖ୍ୟା ପୃଥିବୀର ସବୁ ଦେଶ ତୁଳନାରେ ଅଧିକ । ପୁଣି ଆମ ଦେଶ ଗୋଟିଏ ପଲ୍ଲିବହୁଳ ରାଷ୍ଟ୍ର । ଗାଁର ଲୋକେ ଗାଈଗୋରୁ ପାଳୁଛନ୍ତି ।

ଏଣୁ ଆମ ଦେଶଭଳି ଗୋଟିଏ ଗ୍ରାମବହୁଳ ଓ ଜନବହୁଳ ରାଷ୍ଟ୍ର ପାଇଁ ଗୋବରଗ୍ୟାସ୍ ପ୍ଲାଣ୍ଟ୍‌ର ଚାହିଦା ଅଧିକ ହେବା ସ୍ୱାଭାବିକ । ସରକାର ଶତଚେଷ୍ଟା ସତ୍ତ୍ୱେ ସାରା ଦେଶର ଗ୍ରାମାଞ୍ଚଳକୁ ବିଦ୍ୟୁତ୍ ଶକ୍ତି ଯୋଗାଇଦେବାକୁ ଅସମର୍ଥ ହେଉଛନ୍ତି । ମାତ୍ର ଆମେ ନିଜେ ଚେଷ୍ଟା କଲେ ଆମର ଜାଳେଣି ପାଇଁ ଓ ଘରକୁ ଆଲୋକିତ କରିବାପାଇଁ ଶକ୍ତି ଉତ୍ପାଦନ କରିପାରିବା ।

ନାରଣ ସାହୁ ଗାଁର ଜଣେ ବଡ଼ ଚାଷୀ । ସେ କଥାର ମର୍ମ ବୁଝି ପଚାରିଦେଲେ, ଆଚ୍ଛା ! ମୋ' ଘରେ ତ ପାଞ୍ଚଟି ଗାଈ ଓ ଦୁଇହଳ ବଳଦ ଅଛି । ମୁଁ ନିଜେ ଇଚ୍ଛା କଲେ ସରକାର ମତେ ଗୋବରଗ୍ୟାସ୍ ପ୍ଲାଣ୍ଟ୍ ବସାଇବାରେ ସାହାଯ୍ୟ କରିବେ କି ? ଆମ ଘରେ ଗାଈ ବଳଦ ଯେତିକି ଗୋବର ଯୋଗାଇଦେବେ, ସେତିକିରେ ଗୋଟିଏ ପ୍ଲାଣ୍ଟରୁ ରୋଷେଇ ପାଇଁ ଓ ଘରକୁ ଆଲୋକିତ କରିବା ପାଇଁ ଯଥେଷ୍ଟ ଗ୍ୟାସ୍ ମିଳିବ କି ?

ନାରଣବାବୁଙ୍କ ସ୍ୱାର୍ଥ କେଉଁଠି, ସେ କଥା ବୁଝିବା ମାଷ୍ଟ୍ରଙ୍କ ପକ୍ଷରେ କଷ୍ଟକର ହେଲାନାହିଁ । ସେ କହିଲେ, ହଁ ହଁ ! ଗୋଟିଏ ପରିବାରରେ ତିନି ଚାରିଟି ଗାଈ ଥିଲେ ଆବଶ୍ୟକୀୟ ଗ୍ୟାସ୍ ଉତ୍ପାଦନ ପାଇଁ ଗୋଟିଏ ପ୍ଲାଣ୍ଟ୍ ପ୍ରତିଷ୍ଠା କରାଯାଇପାରିବ । ଏଥିପାଇଁ ପ୍ରାୟ ଦଶହଜାର ଟଙ୍କା ଖର୍ଚ୍ଚ ହେବ । ସରକାର ଶତକଡ଼ା ୫୦ ଭାଗ ରିହାତି ଦେବେ । ଏଣୁ ଅନ୍ତତଃ ପାଞ୍ଚ ହଜାର ଟଙ୍କା ଖର୍ଚ୍ଚ କଲେ ଆପଣ ନିଜ ଚେଷ୍ଟାରେ ଗୋଟିଏ ପ୍ଲାଣ୍ଟ୍ ପ୍ରତିଷ୍ଠା କରିପାରିବେ ।

ରାମ ସାହୁଙ୍କ ମନକୁ କଥାଟା ପାଇଲା ନାହିଁ । ସେ କହିଲେ ଆମ ଗାଁଟି ଛୋଟ । ଏପରି ବ୍ୟବସ୍ଥା ବଳରେ ଗାଁର ଦୁଇ ତିନିଜଣ ବଡ଼ ଚାଷୀ ଉପକୃତ ହେବେ । ପୁଣି ଏପରି କରାଯିବା ଦ୍ୱାରା ଗରିବ ଲୋକେ ଆଉ ଗୋବର ଗୋଟାଇବାର ସମ୍ଭାବନା ରହିବନାହିଁ ।

ଗୋବର ଗୋଟିଏ ଦୁର୍ମୂଲ୍ୟ ବସ୍ତୁ ହୋଇଯିବ । ଆମ ଗାଁ ପାଇଁ ଅନ୍ତତଃ ଗୋଟିଏ ବା ଦୁଇଟି ପ୍ଲାଣ୍ଟ୍ ପ୍ରତିଷ୍ଠା କରିବା କ'ଣ ସମ୍ଭବ ନୁହେଁ ? ସମବାୟ ଭିତ୍ତିରେ ଆମେ ଏକାଠି ଉଦ୍ୟମ କଲେ ସମସ୍ତଙ୍କର ମଙ୍ଗଳ ହୋଇପାରନ୍ତା ।

ମାଷ୍ଟ୍ରେ ଭାରି ଖୁସି ହେଲେ । ସେ ଦେଖିଲେ ଯେ ରାମ ସାହୁଙ୍କ କଥାଟା ଛୋଟ ବଡ଼ ସମସ୍ତଙ୍କ ମନକୁ ପାଉଛି । ସମସ୍ତେ ଜାଣିବାକୁ ବଡ଼ ଆଗ୍ରହୀ । ସେ କହିଲେ, ଦେଖନ୍ତୁ ! ଚୀନ୍ ଦେଶରେ ଏହିପରି ବ୍ୟବସ୍ଥା ବଳରେ ସମବାୟ ଭିତ୍ତିରେ ଗୋଟିଏ ଗୋଟିଏ ଗାଁର

ଶକ୍ତି ଚାହିଦା ପୂରଣ କରାଯାଉଛି । ଆମ ସରକାର ମଧ୍ୟ ଏ ଦିଗରେ ବିଶେଷ କର୍ମତତ୍ପର ହୋଇଛନ୍ତି । ଆପଣମାନେ ସମସ୍ତେ ଯଦି ଆନ୍ତରିକ ଭାବରେ ଚାହାନ୍ତି, ତାହାହେଲେ ଗୋଟିଏ ସର୍ବସମ୍ମତ ନିଷ୍ପତ୍ତି ଗ୍ରହଣ କରନ୍ତୁ ।

ଆମେ ଖଦୀ ଓ ଗ୍ରାମୋଦ୍ୟୋଗ କମିଶନ, ସରକାରଙ୍କ ଅଣଗତାନୁଗତିକ ଶକ୍ତି ଉତ୍ସ ମନ୍ତ୍ରଣାଳୟ, ଭାରତୀୟ ବୈଜ୍ଞାନିକ ଓ ବୈଷୟିକ ଗବେଷଣା ପରିଷଦ, ଭାରତୀୟ କୃଷି ଗବେଷଣା ପରିଷଦ ପ୍ରଭୃତି ସଂସ୍ଥାଗୁଡ଼ିକୁ ଆବେଦନ କରିବା ଏବଂ ଆମ ଚାହିଦା ପୂରଣ ଦିଗରେ ସେମାନଙ୍କଠାରୁ ସାହାଯ୍ୟ ଓ ପ୍ରତ୍ୟକ୍ଷ ସହଯୋଗ ପାଇପାରିବା ।

ଭାରତ ସରକାର ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ଏ ଯୋଜନାର ବହୁଳ ପ୍ରସାର ଓ ବିନିଯୋଗ ପାଇଁ ବିଶେଷ କର୍ମତତ୍ପର ହୋଇଛନ୍ତି । ଏଣୁ ଆମେ ଯଦି ସ୍ୱତଃପ୍ରବୃତ୍ତ ଭାବରେ ସରକାରଙ୍କଠାରୁ ସାହାଯ୍ୟ ଚାହିଁବା, ତାହାହେଲେ ଏହି ପରକଳ୍ପନାଟିକୁ ଆମ ଗାଁରେ ଠିକଣା ଭାବରେ କାର୍ଯ୍ୟକାରୀ କରିବା ଦିଗରେ କୌଣସି ବିଘ୍ନ ଘଟିବ ନାହିଁ ।

ନାରଣ ସାହୁଙ୍କ ମନରେ ଗୋଟିଏ କୌତୂହଳ ସୃଷ୍ଟି ହେଲା । ଥରକୁ ଥର ଖାତ ବା ବାକ୍ସ ଭିତରକୁ ଗୋବର ପୂରାଇବା ପୂର୍ବରୁ ଯେଉଁ ଗୋବରକୁ କାଢ଼ି ଅଣାଯିବ ତାହା କ'ଣ କୌଣସି କାମରେ

ଲାଗିବ ନାହିଁ ? ପୂର୍ବରୁ ଗୋବରକୁ ଆମେ ଗୋଟିଏ ଉତ୍କୃଷ୍ଟ ଜୈବିକ ସାର ଭାବରେ ବ୍ୟବହାର କରୁଥିଲୁ । ବର୍ତ୍ତମାନ ସବୁ ଗୋବର ଯଦି ଶକ୍ତି ଉତ୍ପାଦନ ପାଇଁ ବ୍ୟବହୃତ ହୁଏ, ତାହାହେଲେ ସାର ପାଇଁ ଗୋବର ମିଳିବ କେଉଁଠୁ ? ଏଇ କଥାଟି ସେ ମାଷ୍ଟ୍ର ମହାଶୟଙ୍କୁ ପଚାରିଦେଲେ । ସେ ଭାବିଥିଲେ ଯେ ମାଷ୍ଟ୍ରେ ସମ୍ଭବତଃ ହଡ଼ବଡ଼େଇ ଯିବେ ।

ମାଷ୍ଟ୍ରେ ଉତ୍‌ଫୁଲ୍ଲ ଭାବରେ ଉତ୍ତର ଦେଲେ, କିଏ ଏଇ ପ୍ରଶ୍ନଟି ପଚାରିବେ ବୋଲି ମୁଁ ଆଶା କରିଥିଲି । ଆମେ ବୁଝିବାର କଥା ଯେ, ଏଥିରୁ ଆମେ ଏକାବେଳକେ ଦୁଇ ପ୍ରକାର ଲାଭ ପାଇପାରିବା । ଗ୍ୟାସ୍ ଉତ୍ପାଦନ ପରେ ଥରକୁ ଥର ପ୍ଲାଣ୍ଟ୍‌ରୁ ପଦାକୁ ନିଷ୍କାସନ କରାଯାଉଥିବା ଗୋବରରେ ଶତକଡ଼ା ୧.୫ରୁ ୨.୨ ଭାଗ ଯବକ୍ଷାରଜାନ ବା ନାଇଟ୍ରୋଜେନ୍ ଥାଏ । ଏଣୁ ଏହାକୁ ଆମେ ଜମିରେ ଗୋଟିଏ ଭଲ ନାଇଟ୍ରୋଜେନ୍ ସାର ଭାବରେ ବ୍ୟବହାର କରିପାରିବା ।

ଯୁବକମାନେ ସବୁ କଥା ଧୀରସ୍ଥିର ଭାବରେ ଶୁଣିବା ପରେ ମାଷ୍ଟ୍ରେ ମହାଶୟଙ୍କୁ ଏ ଦିଗରେ ଆଗେଇଯିବା ପାଇଁ ଅନୁରୋଧ କଲେ । ଗାଁର ମଙ୍ଗଳ ହେବାଭଳି ଏବଂ ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତଙ୍କ ଶକ୍ତି ଚାହିଦା ପୂରଣ ହେବା ଭଳି ସମବାୟଭିତ୍ତିକ ଗୋବର ଗ୍ୟାସ୍ ପ୍ଲାଣ୍ଟ୍ ପ୍ରତିଷ୍ଠା ଦିଗରେ ସର୍ବସମ୍ମତିକ୍ରମେ ଗୋଟିଏ ପ୍ରସ୍ତାବ ଗୃହୀତ ହେଲା । ଏ ଯୋଜନାଟିକୁ ଠିକଣା ଭାବରେ କାର୍ଯ୍ୟକାରୀ କରିବାର ଦାୟିତ୍ୱ ମାଷ୍ଟ୍ର ମହାଶୟ ଅକୁଣ୍ଠିତ ଭାବରେ ଗ୍ରହଣ କରିବାକୁ ରାଜି ହେଲେ ।

ଶ୍ୟାମଘନ କହିଲେ, ମାଷ୍ଟ୍ରେ ! ରାତି ବହୁତ ହେଲାଣି । ଆଜି ଏତିକିରେ ଥାଉ । ଆସନ୍ତାକାଲି ଆମେ ଆପଣଙ୍କ କଥା ଅନୁଯାୟୀ ଶକ୍ତି ଜଙ୍ଗଲ ଓ ସାମାଜିକ ବନ ସମ୍ପର୍କରେ ଆଲୋଚନା କରିବା ।



# ଶକ୍ତି ଜଙ୍ଗଲ ଓ ସାମାଜିକ ବନ

## (୩)

ପରଦିନ ସନ୍ଧ୍ୟାବେଳକୁ ବୈଠକ ଘରେ ପୁଣି ଗାଁ ଲୋକଙ୍କ ଭିଡ଼ ଜମିଲା । ସମସ୍ତେ ଏକାଠି ହେବା ପରେ ଗୋବର ଗ୍ୟାସ୍ ପ୍ଲାଣ୍ଟ୍‌ଟିଏ ପ୍ରତିଷ୍ଠା କରିବା ପାଇଁ ପୁଣି ଆଲୋଚନା ଚଳାଇଲେ । ମାଷ୍ଟ୍ରେ ନିଜ କାମଦାମ ସାରି ବୈଠକ ଘରେ ପହଞ୍ଚିବା ବେଳକୁ ଦେଖିଲେ ସମସ୍ତେ ହସଖୁସିରେ ଆଲୋଚନା ଚଳାଇଛନ୍ତି । ସମସ୍ତେ ମିଳିମିଶି ଗାଁର ଉନ୍ନତି ପାଇଁ କିଛି କାମ କରିବା ଦିଗରେ ପରିବେଶ ବେଶ୍ ଅନୁକୂଳ ହୋଇଛି । ମାଷ୍ଟ୍ର ମହାଶୟଙ୍କୁ ଦେଖି ରବି କହିଲା, ମାଷ୍ଟ୍ରେ ! ଭଲ ଭେଳିକି ଲଗାଇଦେଲ । ସମସ୍ତେ ତ ଗୋବରକୁ ନେଇ ବ୍ୟସ୍ତ । ଆଜି ପୁଣି କ'ଣ କହିବେ ?

ଯଦୁ ତତ୍କ୍ଷଣାତ୍ କହିଲା, କ'ଣ ଶକ୍ତି ଜଙ୍ଗଲ କଥା ଆଜି ଆଲୋଚନା ହେବ ପରା ? ହଇହୋ ମାଷ୍ଟ୍ରେ ! କାମ କରିବାର କ୍ଷମତାକୁ ତ ଶକ୍ତି କୁହାଯାଏ । ଶକ୍ତି ଯୋଗାଇଦେବା ଦ୍ଵାରା ବିଭିନ୍ନ କାମ ତୁଲାଇବା ସମ୍ଭବ ହୁଏ । ଜଙ୍ଗଲରେ ଥିବା ଗଛଗୁଡ଼ାକ ଏ କାମରେ କିପରି ସାହାଯ୍ୟ କରିବେ ?

ରାମ ସାହୁ କହିଲେ, ପିଲାଟା ମୁଣ୍ଡରେ ଟିକିଏ ମସଲା ନାହିଁ । କିରେ ! କାଠକୁ ତ ଆମେ ପ୍ରତିଦିନ ଜାଳେଣି ଭାବରେ ବ୍ୟବହାର କରୁଛି । କାଠ ଶକ୍ତିର ଉତ୍ସ ନୁହେଁ କି ? ମୁଁ ଭାବୁଛି, ଶକ୍ତି ଜଙ୍ଗଲର ଅର୍ଥ ହେଉଛି, ଜାଳେଣି କାଠ ପାଇଁ ଜଙ୍ଗଲ ସୃଷ୍ଟି କରିବା ।

ନିଜ ନିଜ ବୁଦ୍ଧି ଖଟାଇ ଗ୍ରାମବାସୀମାନେ ଏପରି ଆଲୋଚନା ଚଳାଉଥିବା ଦେଖି ମାଷ୍ଟ୍ର ମହାଶୟଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେ କହିଲେ, ରାମବାବୁ କଥାଟାକୁ ଠିକ୍ ଭାବରେ ବୁଝିଛନ୍ତି । କିଛି ଜଙ୍ଗଲ ସୃଷ୍ଟି କରିବା ଦ୍ଵାରା ଆମ ଜାଳେଣି କାଠ ସମସ୍ୟାର ସନ୍ତୋଷପ୍ରଦ ସମାଧାନ ହୋଇପାରିବ । ପୁଣି ସାମାଜିକ ସ୍ତରରେ ଆମେ ଏକାଠି ମିଶି ବୃକ୍ଷରୋପଣ ବ୍ୟାପାରଟିକୁ ନିଷ୍ଠାର ସହ ତୁଲାଇ ପାରିଲେ ଗୋମହିଷାଦି ପଶୁମାନଙ୍କ ପାଇଁ ଘାସପତ୍ରର ଅଭାବ ରହିବ ନାହିଁ ।

ନାରଣ ସାହୁ ମତଲବଟାକୁ ଠିକ୍ ଭାବରେ ଧରିପାରିଲେ ନାହିଁ । ସାମାଜିକ ବନ ଓ ଶକ୍ତି ଜଙ୍ଗଲ ଭଳି ଶବ୍ଦଗୁଡ଼ାକ ତାଙ୍କୁ ଅବୋଧ ହେଲା । ସେ କହିଲେ, ମାଷ୍ଟ୍ରେ ! ଏ ତ ବଡ଼ ବଡ଼ କଥା !

ଆମେ କେଉଁଠି ଜଙ୍ଗଲ ସୃଷ୍ଟି କରିବା ? ଧାନଜମି ବା ବଗିଚାକୁ କ'ଣ ଜାଳେଣି କାଠ ପାଇଁ ଝାଉଁ ବଣରେ ପରିଣତ କରିଦେବା ?

ନାରଣବାବୁ ଗାଁର ପ୍ରତିପତ୍ତି ସମ୍ପନ୍ନ ଲୋକ । ତାଙ୍କ ପ୍ରଶ୍ନ ଶୁଣି ସମସ୍ତେ ପରସ୍ପରର ମୁହଁ ଚୁହାଁଚୁହିଁ ହେଲେ । ମାତ୍ର ମାଷ୍ଟ୍ରେ କୌଣସି ପ୍ରକାରେ ବିଚଳିତ ହେଲେ ନାହିଁ । ସେ ଉତ୍ତର ଦେଲେ, ଆଜ୍ଞା ! ମୁଁ ତ ସେଇ କଥା ବୁଝାଇ ଦେବାକୁ ଏଠାକୁ ଆସିଛି । ଯେଉଁ ଜମି ଉର୍ବର ଏବଂ ଯାହା ଶସ୍ୟକ୍ଷେତ୍ରରେ ବା ଉଦ୍ୟାନରେ ପରିଣତ ହେବ ତାହାକୁ ଶକ୍ତି ଜଙ୍ଗଲ ବା ତୃଣଭୂମିରେ ପରିଣତ କରିବାକୁ କିଏ ବା କାହିଁକି ଚାହିଁବ ? ଆମ ଦେଶରେ ବହୁତ ଜମି ପଡ଼ିଆ ପଡ଼ିଛି । ଏହି ଜମିଗୁଡ଼ାକ ସେତେ ଉର୍ବର ନୁହେଁ । ଏଣୁ କେହି କୌଣସି ପ୍ରକାରେ କାମରେ ଲଗାଇବାକୁ ରାଜି ହେଉନାହାନ୍ତି । ଆମେ ଯଦି ଏ ପ୍ରକାର ଉପେକ୍ଷିତ ଜମିରେ ବିଶେଷଜ୍ଞମାନଙ୍କ ପରାମର୍ଶ ଅନୁଯାୟୀ ବିଶେଷ ଧରଣର ବୃକ୍ଷ ରୋପଣ କରିବା, ତାହାହେଲେ କାହାର କିଛି କ୍ଷତି ହେବ କି ? ଆମ ଗାଁ ଚାରିପଟେ କେତେ ଜମି ପଡ଼ିଆ ପଡ଼ିଛି । ଏହି ଜମିରେ ଯଦି ଆମେ ଶକ୍ତି ଜଙ୍ଗଲ ସୃଷ୍ଟି କରିବା, ତାହାହେଲେ ସରକାର ଆମ୍ଭମାନଙ୍କୁ ସବୁ ପ୍ରକାରେ ସାହାଯ୍ୟ କରିବେ ।

ଶ୍ୟାମଘନ କହିଲେ, ''ସରକାରୀ ସାହାଯ୍ୟ ଅବଶ୍ୟ ଚେଷ୍ଟା କଲେ ମିଳିବ । ମାତ୍ର ଏପରି ଗୋଟିଏ ଯୋଜନା ଦ୍ୱାରା କ'ଣ ସତରେ ଜାଳେଣି କାଠ ଚାହିଦା ପୂରଣ ହୋଇପାରିବ ?''

ମାଷ୍ଟ୍ରେ କହିଲେ, ‘‘ଆପଣ କାହିଁକି ମନରେ ସଂଶୟ ପୋଷଣ କରୁଛନ୍ତି ? ଆମ ଦେଶର କୃଷି ବିଶେଷଜ୍ଞମାନେ ଗବେଷଣା ବଳରେ ଏହି ପଡ଼ିଆ ଜମିମାନଙ୍କରେ ସହଳ ସହଳ ବଢ଼ିପାରୁଥିବା ଗଛଗୁଡ଼ିକର ସନ୍ଧାନ ନେଉଛନ୍ତି । ଏପରି ଗଛରୁ ପ୍ରାୟ ପ୍ରତି ସାତ ଆଠ ବର୍ଷ ଅନ୍ତରରେ ଜାଳେଣି କାଠ କଟାଯାଇ ପାରିବ । କାଜୁରିନା, ଇଉକାଲିପଟାସ୍ ପ୍ରଭୃତି ଗଛଗୁଡ଼ିକୁ କିପରି ଭାବରେ ରୋପଣ କରାଯିବ ଓ ସେଗୁଡ଼ିକ ଶୀଘ୍ର ଶୀଘ୍ର ବଢ଼ିବା ପାଇଁ କେଉଁ ପ୍ରକାର ଯତ୍ନ ନିଆଯିବ—ଏସବୁ ସମସ୍ୟାର ସମାଧାନ ପାଇଁ କୃଷି ବିଶେଷଜ୍ଞମାନେ ଆମ୍ଭମାନଙ୍କୁ ସାହାଯ୍ୟ କରିପାରିବେ । ଏଥିପାଇଁ ଜାତୀୟ ସ୍ତରରେ ଗୋଟିଏ ବୋର୍ଡ଼ ଗଠନ କରାଯାଇଛି ଏବଂ ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ଏ ଦିଗରେ ପ୍ରଚୁର ପୁଞ୍ଜି ଖଟାଯିବାର ନିଷ୍ପତ୍ତି ଗୃହୀତ ହୋଇଛି ।

ରବି ସବୁ କଥା ମନଧ୍ୟାନ ଦେଇ ଶୁଣୁଥିଲା । ସେ ଦରପାଠୁଆ । ଏଣୁ ସେ ମାଷ୍ଟ୍ର ମହାଶୟଙ୍କୁ ଅଡୁଆରେ ପକାଇବା ଉଦ୍ଦେଶ୍ୟରେ କହିଲା, ମାଷ୍ଟ୍ରେ ! କେତେ ଜମିରେ ଗଛ ଲଗାଇଲେ ଆମ ଗାଁର ସବୁ ପରିବାରର ଜାଳେଣି ଚାହିଦା ପୂରଣ ହୋଇପାରିବ ?

ମାଷ୍ଟ୍ରେ ତତ୍କ୍ଷଣାତ୍ ଉତ୍ତରଦେଲେ, ବିଶେଷଜ୍ଞମାନେ ସବୁ ପ୍ରକାର ଅଟକଳ କରିଛନ୍ତି । ଜମିର ପ୍ରକୃତିକୁ ଚାହିଁ ଓ ଜମିର ବିସ୍ତୃତିକୁ ଚାହିଁ ସେମାନେ ବିଭିନ୍ନ ଅଞ୍ଚଳ ପାଇଁ ବିଭିନ୍ନ ପ୍ରକାର

ବୃକ୍ଷ ବାଛୁଛନ୍ତି । ମୁଁ ଗୋଟିଏ ସ୍ଥୂଳ ହିସାବ ଦେଉଛି । ଆଠ ବର୍ଷରେ ଥରେ କଟା ହୋଇ ପାରୁଥିବା ବୃକ୍ଷଗୁଡ଼ିକୁ ଯଦି ୭.୪ ହେକ୍ଟର ଜମିରେ ରୋପଣ କରାଯାଏ, ତାହାହେଲେ ୫୦୦ ଜନସଂଖ୍ୟା ବିଶିଷ୍ଟ ଗୋଟିଏ ଗାଁର ଲୋକେ ପ୍ରତିଦିନ ମୁଣ୍ଡପିଛା ଏହି ଶକ୍ତି ଜଙ୍ଗଲରୁ ଏକକିଲୋ ଘଣ୍ଟା ଶକ୍ତି ପାଇପାରିବେ ।

ସାମାଜିକ ଉଦ୍ୟମ ବଳରେ ଏ ପ୍ରକାର ଶକ୍ତି ଜଙ୍ଗଲ ସୃଷ୍ଟି କରାଯିବାର ତାତ୍ପର୍ଯ୍ୟ ସମସ୍ତେ ବୁଝିପାରିଲେ । ପରସ୍ପର ମଧ୍ୟରେ ଆଲୋଚନାଟା ବେଶ୍ ଘନେଇ ଆସିଲା । ଲୋକେ ବୁଝିଲେ ଯେ ଆପଣା ହାତ ଜଗନ୍ନାଥ । ଗାଁର ଉପଯୁକ୍ତ ସ୍ଥାନମାନଙ୍କରେ ଗଛ ଲଗାଇବା ଦ୍ୱାରା ଏବଂ ବିଶେଷଭାବରେ ଶକ୍ତି ଜଙ୍ଗଲ ସୃଷ୍ଟି କରିବା ଦ୍ୱାରା ଜାଳେଣି କାଠ ଓ ଗୋମହିଷାଦି ପଶୁମାନଙ୍କ ଖାଦ୍ୟ ଯୋଗାଣ ବ୍ୟାପାର ସନ୍ତୋଷପ୍ରଦ ଭାବରେ କାର୍ଯ୍ୟକାରୀ ହୋଇପାରିବାର ସମ୍ଭାବନାକୁ ଆଉ ଏଡ଼ାଇ ହେବନାହିଁ । ସମସ୍ତେ ପୁଣି ଏଇ ଦାୟିତ୍ୱଟିକୁ ଠିକଣା ଭାବରେ ତୁଲାଇବା ପାଇଁ ମାଷ୍ଟ୍ରଙ୍କ ଉପରେ ଭରସା ରଖିବାର ନିଷ୍ପତ୍ତି ଗ୍ରହଣ କଲେ ।

ଯୋଜନାଟିର ମହତ୍ତ୍ୱ ଆହୁରି ସ୍ପଷ୍ଟ କରିଦେବା ଉଦ୍ଦେଶ୍ୟରେ ମାଷ୍ଟ୍ରେ କହିଲେ, ଗଛ ଲଗାଇବାର ଆଗ୍ରହ ଯଦି ସ୍ୱତଃ ଆମ ମନରେ ଜାତ ହୁଏ, ତାହାହେଲେ ଏହି ଅସୁବିଧାଗୁଡ଼ିକ ପୂରଣ ହେବା ସଙ୍ଗେ ସଙ୍ଗେ ଆମେ ଆହୁରି ଅନେକ ପ୍ରକାର ଉପକୃତ

ହେବା । ବୃକ୍ଷ ପରିବେଶକୁ ନିର୍ମଳ ରଖିବାରେ ସାହାଯ୍ୟ କରେ । ଏହା ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ଗ୍ୟାସ୍‌ର ମାତ୍ରାକୁ ସନ୍ତୁଳିତ କରିପାରେ । ମୃତ୍ତିକା ସଂରକ୍ଷଣ ପାଇଁ ଉଦ୍ଭିଦର ଚାହିଦା ଯଥେଷ୍ଟ ବେଶି ।

ଆମେ ଜାଣେଣି କାଠ ଓ ଘରବାଡ଼ି ପାଇଁ ଏବଂ କାଗଜ ଉତ୍ପାଦନ ପାଇଁ ବିନା ବିଚାରରେ ଗଛଗୁଡ଼ିକୁ କାଟିଦେବା ଫଳରେ ମୃତ୍ତିକା ଦୁର୍ବଳ ହେଉଛି । ବର୍ଷା ବା ବନ୍ୟା ଜଳର ଗତିଜ ଶକ୍ତି ଉର୍ବର ମୃତ୍ତିକା ସ୍ତରକୁ ଧୋଇଦେବା ଦ୍ୱାରା ଜମିଗୁଡ଼ିକ କାଳକ୍ରମେ ଅନୁର୍ବର ହେଉଛି । ପୁଣି ଗଛ ଘେରାରେ ରହିଥିବା ଅଞ୍ଚଳକୁ ପବନ ଦାଉରୁ ରକ୍ଷା କରିବା ସହଜ । ଗତ ବାତ୍ୟା ବେଳେ ଆମ ଗାଁ ସ୍କୁଲ ଛପରଟା ଉଡ଼ିଗଲା ଓ କାନ୍ଥଗୁଡ଼ାକ ଭୁଶୁଡ଼ି ପଡ଼ିଲା ।

ସ୍କୁଲ ଚାରିପଟେ ଯଦି ଗଛର ଘେର ଥାଆନ୍ତା, ତାହାହେଲେ ପବନ ଆଉ ଏତେ କ୍ଷତି କରିଥାଆନ୍ତା କି ? ଉଦ୍ଭିଦ ଆମର ପ୍ରାଣ । ପ୍ରାଣୀ ଓ ଉଦ୍ଭିଦ ପାରସ୍ପରିକ ନିର୍ଭରଶୀଳତା ବଳରେ ବସୁମାତା କୋଳରେ ତିଷ୍ଠିଛନ୍ତି । ଏଣୁ ଆମେ ଏ ବ୍ୟାପାରଟିକୁ ଯଦି ଠିକଣା ଭାବରେ ପରିଚାଳନା କରିପାରିବା, ତାହାହେଲେ ଆମ ଗାଁର ଯଥେଷ୍ଟ ଉନ୍ନତି ହେବ ।

ଏଥିପାଇଁ କେବଳ ଏକତା ଓ ଦୃଢ଼ ମନୋବଳ ଦରକାର ହେଉଛି । ସୁଖର କଥା ଯେ ଆପଣମାନେ ସମସ୍ତେ ଏଥିପାଇଁ

ଆଗଭର ହୋଇଛନ୍ତି । ଏଣୁ ମୁଁ ଆଶାକରୁଛି ଯେ, ଆପଣମାନଙ୍କ ପ୍ରତ୍ୟକ୍ଷ ସହଯୋଗ ବଳରେ ତଥା ଯଥାସମୟରେ ସରକାରୀ ସାହାଯ୍ୟ ନେଇ ଆମେ ଆମର ଦରକାରୀ ଯୋଜନାଗୁଡ଼ିକୁ ଠିକଣା ଭାବରେ କାର୍ଯ୍ୟକାରୀ କରିପାରିବା ।

ମାଷ୍ଟ୍ରେ ଶେଷ କଥା ଶୁଣାଇଦେଲେ । ସମସ୍ତେ ନିଷ୍ପତ୍ତି କଲେ ଯେ, ପ୍ରତିଦିନ ବୈଠକ ଘରେ ଏହି ଦୁଇଟି ଯୋଜନାର କାର୍ଯ୍ୟକାରିତା ସମ୍ବନ୍ଧରେ ଆଲୋଚନା କରାଯିବ ଏବଂ କାମର ପ୍ରଗତି ସମ୍ବନ୍ଧରେ ବିଚାର କରାଯିବ ।

